

# ଜାଗରଣ

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା

# ଜାଗରଣ

ଏସୀୟ ଓ ପ୍ରଶାନ୍ତ ମହାସାଗରୀୟ ଦେଶମାନଙ୍କର ପୁସ୍ତକ ବିକାଶ ସମନ୍ୱ ୟୁନେସ୍କୋର ଆଞ୍ଚଳିକ କାର୍ଯ୍ୟାଳୟ, ଇସ୍‌ଲାମାବାଦ ଠାରେ ରହିଛି । ଏହାଙ୍କ ସହାୟତାରେ ମଧ୍ୟପ୍ରଦେଶ, ତାମିଲନାଡୁ ଓ ପଶ୍ଚିମ ବଙ୍ଗ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ମିଳିତ ଭାବରେ ମହିଳା ନବସାକ୍ଷର ମାନଙ୍କ ପାଇଁ ଏକ ହିନ୍ଦୀ ପୁସ୍ତିକା **'ଜାଗୃତ'** ପ୍ରସ୍ତୁତ କରିଛନ୍ତି । 'ଜାଗରଣ' ଏହାର ଓଡ଼ିଆ ରୂପାନ୍ତର ।

ମୂଳଲେଖା : **ଡ଼ଃ ହୀରାଲାଲ ବାଛୋତିଆ**
ଅନୁବାଦ : **ଡ଼କ୍‌ଟର ହେମନ୍ତ କୁମାର ଦାସ**

ବହିର ନାମ : **ଜାଗରଣ**

ମୂଳ ହିନ୍ଦୀ ରଚନା : **ଡ଼କ୍ଟର ହୀରାଲାଲ ବାଛୋତିଆ**

ଓଡ଼ିଆ ଅନୁବାଦ : **ଡ଼କ୍ଟର ହେମନ୍ତ କୁମାର ଦାସ**

ସମୀକ୍ଷା : **ଶ୍ରୀ ଇନ୍ଦୁ ଭୂଷଣ ମିଶ୍ର**
**ଶ୍ରୀ ନରସିଂହ ମିଶ୍ର**
**ଡ଼କ୍ଟର ଉଦ୍ଧବ ଚରଣ ନାୟକ**

ପ୍ରକାଶନ କାଳ : ୧୯୯୩ (ମୁଦ୍ରା ସଂଖ୍ୟା-୧୦,୦୦୦)

ପ୍ରକାଶନ ସଂଖ୍ୟା : ଏସ୍. ଆର୍. ସି. ୧୨୭-୭/୯୨

ପ୍ରକାଶକ ଓ ସତ୍ତ୍ୱାଧିକାରୀ : **ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା, ଭୁବନେଶ୍ୱର**

ପ୍ରଚ୍ଛଦ ଓ ଅଙ୍ଗସଜ୍ଜା : **ଶ୍ରୀ ବ୍ରଜକିଶୋର ଜେନା**

ମୁଦ୍ରଣ : **ଲକି ପ୍ରିଣ୍ଟର୍ସ,**
କମାପଲ୍ଲୀ, ବ୍ରହ୍ମପୁର-୪

ମୂଲ୍ୟ : **ଟ ୨-୫୦**

Title of the book : **JAGARAN**

Written by : **Dr. Hiralal Bachhotia**

Translated by : **Dr. Hemanta Kumar Das**

Reviewed by : **Shri Indubhushan Mishra**
**Shri Narasingha Mishra**
**Dr. Uddhab Charan Nayak**

Year of Publication : 1993 (Copies-10,000)

Publication No. : S. R. C. - 127-7/1992

Owned and Published by : **Director, SRC for Adult Education, Orissa, BBSR.**

Cover and lay out : **Shri B. K. Jena**

Printed at : **Lucky Printers**
Kamapalli, Berhampur-4

Price : **Rs. 2-50**

# ଆମୁଖ

ନବସାକ୍ଷରଙ୍କ ପାଇଁ ସାହିତ୍ୟ ରଚନା ଏକ କଠିନ କାର୍ଯ୍ୟ । ଏଥିପାଇଁ ଅର୍ଜିତ ଜ୍ଞାନ, ପଢ଼ା ଲେଖାର ଶକ୍ତି, ବିଷୟ ପ୍ରତି ଆଗ୍ରହ ଏବଂ ରୁଚି ଉପରେ ଦୃଷ୍ଟି ଦେବାକୁ ହୁଏ । **ଡ଼ଃ ହୀରାଲାଲ ବାଛୋତିଆ** ଏହି କଠିନ କାର୍ଯ୍ୟଟିକୁ ସରଳ କରିଦେଇଛନ୍ତି । ଶ୍ରୀ ବାଛୋତିଆ ଦେଶର ଏକ ଶୀର୍ଷ ଜାତୀୟ ସଂସ୍ଥା ଏନ୍. ସି. ଆର୍. ଟି. ରେ ବହୁ ବର୍ଷ ଧରି କାର୍ଯ୍ୟ କରୁଛନ୍ତି ଏବଂ ଜନଶିକ୍ଷା ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ବି ରହିଛି । ଏ ବିଷୟରେ ତାଙ୍କର ନିଜସ୍ୱ ଅନୁଭୂତି ପ୍ରଚୁର ଏବଂ ବେଶ୍ ବର୍ଣ୍ଣାଢ୍ୟ ।

ପ୍ରସ୍ତୁତ ନାଟକ ନାରୀ ଜାଗରଣ ଦିଗରେ ଗୋଟିଏ ଭଲ ଉଦ୍ୟମ । ଶ୍ରୀ ବାଛୋତିଆ ଏକ କର୍ମଶାଳାରେ ଚମତ୍କାର ଗ୍ରନ୍ଥଟିକୁ ପ୍ରସ୍ତୁତ କରିଛନ୍ତି । ଏଥିଲାଗି ଆମେ ତାଙ୍କ ନିକଟରେ କୃତଜ୍ଞ । ଗ୍ରନ୍ଥଟିକୁ ଚିତ୍ରରେ ସୁସଜ୍ଜିତ କରିଛନ୍ତି **ଶ୍ରୀ ଇସ୍ମାଇଲ୍ ଲହରୀ** । ଆମେ ଉଭୟ ଲେଖକ ତଥା ଚିତ୍ରକାରଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛୁ ।

**କୃଷ୍ଣା ଅଗ୍ରୱାଲ୍**
ଅଧ୍ୟକ୍ଷା
ଭାରତୀୟ ଗ୍ରାମୀଣ ମହିଳା ସଂଘ,
ମଧ୍ୟପ୍ରଦେଶ ଶାଖା, ଇନ୍ଦୋର

**ଡ଼. ଡ଼. ଶର୍ମା**
ନିର୍ଦ୍ଦେଶକ
ରାଜ୍ୟ ସଂସାଧନ କେନ୍ଦ୍ର,
ଜନ ଶିକ୍ଷା, ମଧ୍ୟପ୍ରଦେଶ, ଇନ୍ଦୋର

# ପାତ୍ର - ପାତ୍ରୀ

ସୁମ୍ନୀ

ବୁଧୀ

ଷୋଦଶୀ

ସୁଧା

ଘାର ଅଠା

ଡିଙ୍ଗା

ରାଧା

ବସନ୍ତ

# ଜାଗରଣ



## ଅଙ୍କ-୧

ସୁମୀ - ବସି ବସି କ'ଣ ଭାବୁଛୁ ଲୋ ବୁଧୀ ?

ବୁଧୀ - ନା, କିଛି ନାହିଁ । ଜାମା ଖଣ୍ଡେ ସିଲେଇ କରିବାକୁ ଭାବୁଥିଲି । ସିଲେଇ ମଜୁରି ଶୁଣି ମୁଣ୍ଡ ବୁଲେଇ ଦଉଛି । ଆଗରେ ପରବ, ଜାମା ସିଲେଇରେ ଏତେ ପଇସା ବାହାରି ଗଲେ, ଆଉ

ପୂଜା କ'ଣ, ପାରବଣ କଣ ? (ଭାବି) ଆଲୋ, ମୁଁ ତ ଖାଲି ମୋ କଥା ଗପି ଯାଉଛି, ଆଉ ତୋ ଖବର କ'ଣ ?

ସୁମୀ – ଖବର ଆଉ କ'ଣ ? ତୁ ଗୋଟାଏ କାମ କର । ସିଲେଇ ଶିଖି ପକା । ମୁଁ ଗତ ଛଅମାସ ହେଲା ଆମ ଘରକୁ ଯାଇଥିଲି । ସେଠି ସିଲେଇ ଶିଖି ଆସିଛି ।

ବୁଧୀ – କ'ଣ କହୁଚୁ ? ସିଲେଇ ଶିଖି ଆସିଚୁ ? ତେବେ ଗୋଟାଏ କାମ କର । ମୋ ପୁଅର ଜାମା ସିଲେଇ କରିଦେ ।

ସୁମୀ – ମିସିନ୍‌ଟା ଅଣ କଣେ, ନହେଲେ ସିଲେଇ କରି ଦେବି ।

ବୁଧୀ – ମିସିନ୍ ତ ନାହିଁ, ସିଲେଇ ପୁଣି ଶିଖିଲୁ କେମିତି ?

ସୁମୀ – ମୋ ଭାଇ, ବି.ଡ଼ି.ଓ.ଙ୍କୁ ଖଣ୍ଡେ ଦରଖାସ୍ତ ଲେଖି ଦେଲେ । ଆଉ କେତେଜଣ ବି ସେମିତି ଦରଖାସ୍ତ ଦେଲେ । ସେଇଥିରେ ସିଲେଇ ଶିଖିବାର ବ୍ୟବସ୍ଥା ହୋଇଗଲା ।

ବୁଧୀ – ସିଲେଇ କ'ଣ ତୁ ଏକା ଶିଖିଲୁ ?

ସୁମୀ – ନାଇଁ ମ, ଅଉ ପାଞ୍ଚ ସାତ ଜଣ ସ୍ତ୍ରୀ ଲୋକ ବି ଥିଲେ । ଶିଖିବା ପାଇଁ ବେଶୀ ଲୋକ ହେଲେ, ସରକାର ତା'ର ବ୍ୟବସ୍ଥା କରିଦିଅନ୍ତି ।

ବୁଧୀ – ମୋର ବି ଶିଖିବାକୁ ମନ । ହେଲେ ଆଉ ସ୍ତ୍ରୀ ଲୋକ କୁଆଡୁ ଆସିବେ ?

ସୁମୀ – ସେଥିପାଇଁ ତୁ ଏତେ ଭାବୁଚୁ କାହିଁକି ? ସ୍ତ୍ରୀ ମିଳିବେ ନାହିଁ । ଶିଖିବାକୁ ଏବେ କୋଉ ଟଙ୍କା ପଇସା ପଡୁଚି ନା କ'ଣ ? ଅଧିକ ଯେ ଶିଖୁଚି ସରକାରଙ୍କ ତରଫରୁ ତାକୁ ମାସକୁ ଟ ୫୦/- ଦରମା ବି ମିଳୁଚି ।

ବୁଧୀ – ସତରେ ନା କ'ଣ ? ତେବେ ତ ନିଶ୍ଚେ ଶିଖିବି ।

ସୁମୀ – ଆଲୋ ଭଉଣୀ । ସରକାରଙ୍କର କ'ଣ ଗୋଟିଏ 'ନିଜେ ରୋଜଗାର କର' ଯୋଜନା ଅଛି । ସେଇଥିରେ ଏସବୁ ହେଉଚି । ଏଥିରେ ଆଉ ଆଉ ଘରୋଇ କାମଧନ୍ଦା ବି ଶିଖା ଯାଉଚି ।

ବୁଧୀ – ଟୋକେଇ ବୁଣିବା, ଛାଞ୍ଚୁଣୀ ତିଆରି କରିବା— ଏସବୁ ତ ଘରୋଇ କାମଧନ୍ଦା ।

ସୁମୀ – ଖାଲି କ'ଣ ସେତିକି ? କେନ୍ଦ୍ରରେ ଆଉରି କେତେ କ'ଣ ବି ଶିଖା ଯାଉଚି । କିଏ ସାଇକେଲ ମରାମତି ଶିଖୁଛନ୍ତି । ଆଉ ପୁଣି ଗାଲିଚା, ଦରି ବୁଣା, ଖେଳଣା ତିଆରି, ବଢ଼େଇ କାମ, କମାର କାମ, ଜୋତା ତିଆରି, ଏମିତି କେତେ କାମ ବି ଶିଖାଯିବ ବୋଲି ଶୁଣିଥିଲି ।

ବୁଧୀ – ଗୋଟିଏ କଥା । ମନେକର ଜଣେ କାମଧନ୍ଦା ଶିଖିଗଲା । ସେ ପୁଣି ନିଜ କାମ ଆରମ୍ଭ କରିବ

କେମିତି ? ସେଥିପାଇଁ କିଛି ଟଙ୍କା ପଇସା ତ ଦରକାର ।

ସୁମୀ – ଭଲ କଥାଟିଏପଚାରିଲୁ । ତେବେ ସେ ବ୍ୟବସ୍ଥା ବି ହୋଇଚି । ସେଥିପେଇଁ ସରକାରୀ ସାହାଯ୍ୟ ମିଳୁଚି ଯେ । ସିଲେଇ ମିସିନ୍ କିଣିଲେ ବି ସରକାର ଟଙ୍କା ଦଉଚନ୍ତି ।

ବୁଧୀ - ଆଲେ, ତୁ ତ ସରକାରଙ୍କର ଗୁଣ ଗାଇବାକୁ ବସିଲୁଣି ।

ସୁମୀ – ତୁ ଶୁଣୁନୁ, ସିଲେଇ ମିସିନ୍ କିଣିବାକୁ ସରକାର ଟଙ୍କା ଦଉଚନ୍ତି । ପୂରାଦାମ୍‌ର ଅଧା ଟଙ୍କା ଛାଡ଼, ବାକି ଅଧକ ଯାହାର ଯେମିତି ସୁବିଧା ଦେଖି ଅଳପ ଅଳପ କରି ଶୁଝିବାକୁ ହେବ ।

ବୁଧୀ – ଏ ତ ଭାରି ଭଲ କଥା । ଗାଁ ଲୋକେ ସିଲେଇ ଟିକିଏ ପାଇଁ କୁଆଡ଼େ କୁଆଡ଼େ ଦୌଡୁଛନ୍ତି । ଗାଁରେ ମିସିନ୍‌ଟିଏ ପଡ଼ିଗଲେ, ବେଶୀ ହେଉ ପଛକେ, ଛୋଟମୋଟ ସିଲେଇ ତ ହେଇଯିବ । ସାଙ୍ଗକୁ କିଛି ଟଙ୍କା ବି ହାତକୁ ଆସିବ । ସେଇଥିରୁ ଆସ୍ତେ ଆସ୍ତେ କରଜ ବି ଶୁଝି ହେଇଯିବ । ତତେ ନେହୁରା ହଉଚି, ମୋ ପେଇଁ ବି ଖଣ୍ଡେ ଦରଖାସ୍ତ ଲେଖି ଦେ । ମତେ ତ ଲେଖାପଢ଼ା ଆସେ ନାଇଁ ।

ଝୁମୀ - ଲେଖିଦେବ । ହେଲେ ତୁ ବି ଏଥର ପଢ଼ାଲେଖା ଆରମ୍ଭ କର । ଗାଁରେ ତ ପଢ଼ାପଢ଼ିର ବ୍ୟବସ୍ଥା ହେଲାଣି । ଖାଲି ଟିକିଏ ବେଳ କରି ପାରିଲେ ହେଲା ।

ବୁଧୀ - ତୁ ଯାହା କହୁଚୁ, ସବୁ କରିବି । ହେଲେ ତୁ ଆଗ ମୋ ପେଇଁ ଖଣ୍ଡେ ଦରଖାସ୍ତ ଲେଖିଦେଲୁ ।

## ଅଙ୍କ-୨

(ବୁଧୀର ଘର । କିଛି ଦିନ ପରେ ।)

ବସନ୍ତ - ଆଲୋ ଶୁଣୁଚୁ ! ଗଣ୍ଡାଏ ବୁଝ ଭୁଜିଦେଲୁ ! ଏତେ ଦିନପରେ ଭିଣେଇ ଆସିଚନି । ଟିକିଏ ଖାଇବା ପିଇବାର ବ୍ୟବସ୍ଥା କରିବା ।

ବୁଧୀ - ଯେତେବେଳେ ଦେଖ, ବୋତଲ ଧରି ବସି ଯାଉଚ । ଖାଲି ଗୋଟାଏ ବାହାନା ମିଳିଗଲେ ହେଲା ।



ବସନ୍ତ - ସେଥିରେ ତୋର କ'ଣ ବଗିଡ଼ ଯାଉଚ ?
ପିଉଚ ତ ମୁଁ ମୋ କମେଇରୁ ପିଉଚ ।
କାହାର କ'ଣ ଗଲା ? ହେଇଛି, ଭୁ ବେଶୀ
ବକ୍‌ବକ୍ ହ'ନା । ଧ'କଥା ଶିଖିଚୁ ବୋଲି
ତୋର ଭାରି ଧମାକ୍ ହୋଇଗଲାଣି ନା ? ପାଦ
ଆଉ ମାଟିରେ ପଡୁନାଇଁ ।

ବୁଧୀ - କାହା ପାଦ ମାଟିରେ ପଡୁନାଇଁ, ଏକଥା
ସମସ୍ତେ ଦେଖୁଛନ୍ତି । ତମ ଆଗରେ ତ
କେହି ମଣିଷ ନୁହନ୍ତି । କାଲି ରଜୁର ମାଷ୍ଟରଙ୍କୁ
ତମେ କେଡ଼େ କେଡ଼େ କଥା କହିଗଲ । ସିଏ
କ'ଣ ଭାବିଥିବେ ।

ବସନ୍ତ - ଆବେ ଚୋପ୍... ନ ହେଲେ...

ବୁଧୀ - ନ ହେଲେ ? ହାତ ଉଠେଇ ମାରିବ ? ଟିକିଏ
ସରମ ନାହିଁ ? କାମଦାମ ଛାଡ଼ି ଘରେ
ବସିଚ, ଏଣେ ଘର କେମିତି ଚଳୁଚି, କିଛି
ବୁଝୁଚ ? ରଜୁ ଆଉ ସୀତାଙ୍କ କଥା କେବେ
ପଚାରିଚ ? ହେଇ ହେଇ ମାଷ୍ଟ୍ରେ ପାଞ୍ଚ ପଦ
କହିଲେ, ତମରି ଭଲ ପାଇଁ ସିନା...

ବସନ୍ତ - ମଝିରେ ତା' ଘର ମଣିଷ କାଇଁ ନାକ
ଗଳେଇଲା ?

ବୁଧୀ - ସୁଧା ତ ମଣିଷ ପାକରେ ସାର । ସିଏ ପରା ଆମ
କେନ୍ଦ୍ରର ମୁଖିଆ । ଆମ ଭଲ ପାଇଁ କେତେ

ଚିନ୍ତା କରୁଚି । ସେଇଥି ପାଇଁ କଥା ମଝିରେ କ'ଣ ପଦେ କହି ଦେଇଥିବ ।

ବସନ୍ତ - କହିଦବ ? କାହାଁକି ବା ? ମୁଁ କଣ କା'ର ଖାଏ ନା ଧାରେ ? ହେଇ, ଶୁଣ୍ । ଭୁ ମୋର ହାତ ଧରିଚୁ । ଏତେ ଲୋକଙ୍କ ଆଗରେ ସେ ମୋ ମୁଣ୍ଡ ତଳକୁ କରିଚି । ତୁ ଆଉ ତା' ସାଙ୍ଗରେ ଜମା ମିଳାମିଶା କରିବୁ ନାଇଁ ।

ବୁଧୀ - କାହାଁକି ବା ?

ବସନ୍ତ - ପାଟି ବନ୍ଦ କରି କହୁଚି, ଯାହା ତତେ କହିଲି, ସେଇଆ କରିବୁ ।

ବୁଧୀ - କାଇଁକି କରିବିନା ? କୋଉ କାମଟା କେବେ ଠିକଣା କରି କରିଚ ? ପିଲେଇ ଟିକିଏ କରି ଦି'ପଇସା ଘରକୁ ଆଣିଲାରୁ ଯାଇଁ ଗୁଣ୍ଡା ଉଠୁଚି, ବୁଝିଲ ।

ବସନ୍ତ - ସେଇଥିରେ ମୁଣ୍ଡ କିଣି ନେଇଚୁ, ନାଇଁ ? କାଳକାଳରୁ ମାଇପେ ଏମିତି କାମ ଦାମ କରି ଆସୁଚନ୍ତି ନା ତୁ ନୂଆ କରୁଚୁ ?

ବୁଧୀ - କାମ କରିବାକୁ ମୁଁ ଡରୁନାଇଁ । ତେବେ ସୁଧା ପାଖକୁ ମୁଁ ନିଶ୍ଚେ ଯିବି ।

ବସନ୍ତ - ଦେଖିବି, ତୁ କେମିତି ଯାଉଚୁ ! କହୁଚି କ'ଣ ନା, ସୀତାକୁ ଆଉରି ପଢ଼ା ।

ବୁଧୀ - କୋଉ ଭୁଲ୍ କଥାଟା କହିଲି ?

ବସନ୍ତ – ଗାଁ ଗୃହଶାଳୀରେ ତ ପାଞ୍ଚ କ୍ଲାସ୍ ଯାଏ ଅଛି । ସେତକ ସାରିଲା, କୋଉ ଏବେ ହିଏ ଜଜ୍ ବାରିଷ୍ଟର ହଉଚି ଯେ, ଆଉରି ପଢ଼େଇବାକୁ ତାକୁ କଲେଜ ପଠେଇବ ?

ସୋଦରୀ– କି କଥା ତୁ କହୁଚୁ ବୋହୂ ? ତୁ ନନେ ତ ପୁଣି ଦି କ୍ଲାସ ଯାଏ ପଢିଚୁ ! ସୀତା ତ ହେଲେ ପାଞ୍ଚ ଯାଏ ଗଲାଣି । ମୋ ସାନ କୁହା ମାନ । ତାକୁ ଗାଁ ବାହାରକୁ ମୋଟେ ପଠାନା । କୋଉ ଏବେ ଧନୀ ସାଉକାର ଝିଅ ହେଇଚି ଯେ, ସହରରେ ଯାଇଁ ପଢିବ । ସିଏ ତ ହେଲେ ଏତେ ବାଟ



ପଢ଼ିଗଲା । ଗାଁରେ ଆଉ ପାଞ୍ଚଟା ଝିଅ ତ ଅଛନ୍ତି, ଗଲୁ ଦେଖିବୁ, କେତୁଟା ତା'ଭଳି ପଢ଼ିଚନ୍ତି ।

ବୁଧୀ - ସମସ୍ତେ ଯେମିତି ପଢ଼ିପାରିବେ, ସେଇଥିପାଇଁ ପରା ଆମ ନାରୀ ସମିତି ଲାଗିଚି ।

ସୋଦରୀ- ସମିତି କ'ଣ କରିବ ? ପଢ଼ିବାକୁ କ'ଣ ଜୋର୍ କରିବ ?

ବୁଧୀ - ଜୋର ଜବରଦସ୍ତ କଥା ନୁହେଁ । ସମସ୍ତଙ୍କୁ ବୁଝେଇବ । ବୋଉ; କହିଲ ଦେଖି, ଆମର ତ ରୋଜଗାର ପତର କିଛି ନାଇଁ, ପିଲାଙ୍କୁ ଦି'ଅକ୍ଷର ପଢ଼େଇ ଥିଲେ, କିଛି ନହେଲେ ସେମାନେ ନିଜ ଗୋଡ଼ରେ ଠିଆ ହେଇ ପାରିବେ ତ ? ଏଥିରେ ଭୁଲ୍‌ଟା ରହିଲା କେଉଁଠି ? ନାରୀ ସମିତି ତ ଏଇ କଥା କହୁଚି ।

ବସନ୍ତ - ଆଲୋ ଯା ଯା । ଏମିତି କେତେ ସମିତି ଦେଖିଚି । ଦେ' ବୁଢ଼ ମୁଠାଏ ଦେ, ହଁ, ଗୋଟାଏ ପିଆଜ ବି କାଟି ଆଣିବୁ ତା' ସାଙ୍ଗରେ ।

(ବାହାରେ କିଛି ସ୍ଲୋଗାନ୍ ଶୁଣାଗଲା)

ମା' ଭଉଣୀ ଏକ୍ ହୁଅ, ପାଠ ପଢ଼ାରେ ମନ ଦିଅ ।
ମା' ହେଲେ ପାଠୋଇ, ଦେଶ ଯିବ ଆଗେଇ ॥

ବୁଧୀ - ହେଇଛି, ନିଅ ତମ ବୁଟ ଆଉ ପିଆଜ । ମୁଁ ଯାଉଚି ।

ବସନ୍ତ - ଦେଖ, ଦେଖ, ସ୍ତ୍ରୀ ଅକଲକୁ ଦେଖ । ଘରେ କୁଣିଆ, ଇଏ ବାହାରଲେ ଯାଇ ବୁଲି ।

ବୁଧୀ - ତମ ଭିଣୋଇ ତ ଘରଲୋକ । ପୁଣି ତମେ ତ ଅଛ । ମୁଁ ସଭାକୁ ଯାଉଚି ।

ବସନ୍ତ - ନା ଭୁ ଯିବୁ ନାହିଁ ।

ବୁଧୀ - ମନା କଲେ କ'ଣ ହେବ ଜାଣିଚ ? ସଭାର ସବୁ ମାଇପେ, ତମ ଉପରେ ଚଢ଼ାଉ କରିବେ । ଏତେ ଝଞ୍ଜଟରୁ କ'ଣ ମିଳିବ ? ମୁଁ ଯାଏଁ । (ଚାଲିଗଲା)

## ଅଙ୍କ-୩

(ମହିଳା ସମିତିର ବଡ ହଲ ଘର । କିଛି ମହିଳା ବସିଛନ୍ତି । କଥାବାର୍ତ୍ତା ଚାଲିଛି)

ସୁଧା – ଭଉଣୀମାନେ; ବହୁକାଳର ଏ ଦେଶର ପରିବାରରେ ପୁରୁଷମାନେ ମୁଖିଆ ହୋଇ ଆସିଛନ୍ତି । ସଂସାର ଚାଲେ ସେଇମାନଙ୍କ କଥାରେ । ସବୁବେଳେ ସେମାନେ ମନମୁଖୀ କାରବାର ଚଳାଇ ଆସିଛନ୍ତି । ଘରର ବୋହୂ ଝିଅରୀ ଦିନରାତି ଖଟି ଖଟି ମଲେଣି । ତେବେ



ଷ ତାଙ୍କୁ ନାନା କଥା ଶୁଣିବାକୁ ପଡୁଚି ।
ବୋହୂର ପିଲଝିଲା ହୋଇଗଲା ପରେ ବି
ଶାଶୁଙ୍କର ହାକ୍‌ମାର୍ତ୍ତ ବନ୍ଦ ହୁଏ ନାହିଁ । ସ୍ତ୍ରୀ
ଲୋକମାନେ ଏମିତି ସ୍ତ୍ରୀ ଲୋକମାନଙ୍କୁ ଦଣ୍ଡ
ଦେଇ ଦେଇ ଆସୁଚନ୍ତି ।

ପାର ଅପା–ଘରର କାମ ପାଇଟି କରିବାକୁ ବୋହୂକୁ
ଅଣାଯାଏ । ଶଶୁର ଘରର କାମଦାମରେ
ତା'ମନ ଲାଗେ ନାହିଁ । ତା'ର ବାପଘର କଥା
ମନେ ପଡ଼େ । ଶଶୁର ଘରକୁ ସିଏ ନିଜ ଘର
ବୋଲି ଭାବି ପାରେନାହିଁ । ମାନ ସନମାନ
ଚାହିଁଲେ ବୋହୂକୁ ବି ନିଜର ଆଚାର
ବେବହାର ବଦଳାଇବାକୁ ପଡ଼ିବ ।

ବୁଧୀ – ଆଲୋ ଅପା, ପହିଲେ ପହିଲେ ସବୁ ବୋହୂ
ସେମିତି ଭାବନ୍ତି । ଆମେ ସଭିଏଁ ସେଇଆ ।
ତେବେ ମାଇପେ ହେଲେ କାଦୁଅ ମେଞ୍ଚା ।
ଅଳପ ଦିନରେ ସେମାନେ ଶାଶୁଘରକୁ ନିଜ
ଘର ବୋଲି ମାନି ନିଅନ୍ତି । ଏଇଥିପାଇଁ ମୁଁ
କହୁଚି, ବୋହୂ ଉପରେ ଖାଲି ହୁକୁମ୍
ଚଳେଇଲେ ହେବନାଇଁ । ତା' ମନ କଥା
ଟିକିଏ ଜାଣିବାକୁ ହେବ । ଘରର କାମଦାମରେ
ତାଙ୍କୁ ପଚରି ଉଚରି କରିବାକୁ ହେବ ।

ସୁଧା – ଭଉଣୀ, ବୁଧୀ ତ ଭଲ କଥା କହୁଚ । ଘର ପାଇଁ ଯେତେବେଳେ କିଛି ଗୋଟାଏ ନିଷ୍ପତ୍ତି ନିଆ ହେଉଚ, ସେତେବେଳେ ବୋହୂକୁ ଯଦେ ପଚାରିଦେଲେ, ତା'ମନଟା ଖୁସି ରହିବ । ସ୍ୱାମୀ ତ ସଦାବେଳେ ସ୍ତ୍ରୀ ସହିତ ପରାମର୍ଶ କରିବା ଦରକାର । ଏମିତି ହେଲେ ଦୁହିଙ୍କ ଭିତରେ କଳିକଜିଆ ହେବ ନାହିଁ । ଘରର ବୋହୂଟି ପରିବାରରେ ସମ୍ମାନର ସହ ଚଳିପିବ ।

ପାର ଅପା–ମରଦ ପୁଅ କ'ଣ ମାଇପିଟାର ଗୋଡ଼ ଧୋଇ ପାଣି ପିଇବ ? ମୁଁ କୁଆଡ଼େ ଯିବି ଲୋ ମା । ମାଇପି ଜନମ ତ ସମସ୍ତଙ୍କ କଥାମାନି ଚଳିବା ପାଇଁ । ଆଉ ତମେ ଇଏ କି ନୂଆ ଢଙ୍ଗ କାଢୁଚ ବା ?

ସୁଧା – ମାଇପେ ତ କୋଉକାଳରୁ ସେଇଆ କରି ଆସୁଚନ୍ତି । ମରଦ ପୁଅ ଯେବେ ଭୁଲ୍ କଥା କହିଲେ, ତାକୁ ବି ମାନୁଛନ୍ତି । ସେଇଥିରୁ ସବୁ ପୁରୁଷ ଭାବନ୍ତି ଯେ, ସେମାନେ ହେଉଛନ୍ତି, ଜଣେ ଜଣେ ଦେବତା । ଆଉ ମାଇପେ ହେଉଛନ୍ତି ତାଙ୍କର ପାଦର ପାଣ୍ଡୋଇ । ଯଦି ପୁରୁଷଟି ଦେବତା ହେଲା, ତେବେ ନାରୀଟି ବି ଦୁର୍ଗା । ଆଉ ପୁରୁଷର ବଳ; ଏ କଥା ଭୁଲିଲେ ଚଳିବ ନାହିଁ ।

ଛଳ - ସ୍ତ୍ରୀ ଲୋକମାନେ କେମିତି ନିଜର ବଳ ବଢ଼ାଇବେ ? ଏଇ କଥାଟା ଆଗ କହ ମ ।

ସୁଧା - ଭାରି ଭଲ କଥାଟିଏ ପଚାରିଲ । ସବୁ ଜାଗାରେ ତ ଗୋଟାଏ ଉପାୟ କାମ କରିବ ନାହିଁ । ଭାବିବାକୁ ପଡ଼ିବ, ବିଚାରିବାକୁ ପଡ଼ିବ, ସମସ୍ତେ ଜାଣନ୍ତି, ନାରୀ ଆଉ ପୁରୁଷ - ଏ ଦୁହେଁ ହେଉଛନ୍ତି, ଗୋଟିଏ ଗାଡ଼ିର ଦୁଇ ଚକ । ଦୁ'ଜଣ ଠିକ୍ ଅଛନ୍ତି ତ ଗାଡ଼ି ବି ଭଲ ଚାଲୁଛି । ସ୍ତ୍ରୀ ଲୋକଟି ଘରର ଯେତେ କାମ କରୁଚି, ତା କୋଉ କମ୍ ? ଚୁଲି ହାଣ୍ଡି ତ ଜାଣି ତା'ରି କାମ । ପାଣି ଅଣା, ଘର ଓଳା, ଲୁଗା ଧୁଆ, ଗାଈଗୋରୁଙ୍କ ଦେଖାରଖା, ବିଲବାଡ଼ି କାମ, ବନ୍ଧୁବାନ୍ଧବ, ଗଲା ଆଇଲା, ଏମିତି କାମର କୋଉ ଶେଷ ଅଛି ? ହେଲେ ଏ ଗୁଡ଼ାକ କାମରେ ଗଣାଯାଏ ନାହିଁ । ସେଇଥି ପାଇଁ ମୁଁ କହୁଚି, ବେଳ କାଢି ଆଉ କିଛି କାମ କଲେ, ସେଥିରୁ ଫାଇଦା ମିଳିବ, ଦୁ'ପଇସା ହାତକୁ ଆସିଲେ, ତେଣିକି ସମସ୍ତେ ଜାଣିବେ । ସ୍ତ୍ରୀ ଲୋକମାନେ ଆଗ ନିଜ ଗୋଡ଼ରେ ଠିଆ ହୁଅନ୍ତୁ । ପିଲା ଛୁଆଙ୍କୁ ସେମିତି ଗଢ଼ନ୍ତୁ । ତା'ପରେ ଦେଖିବେ, ସେମାନଙ୍କୁ କେତେ ସମ୍ମାନ ମିଳୁଚି ।

ଲିଳ – ଆଲୋ ଭଉଣୀ, ପିଲାଙ୍କୁ ଆମେ କେମିତି ଗଢିବୁ ବା, ଟିକିଏ ହେଲେ ବୁଝେଇ କହ ।

ସୁଧା – ଏତେବେଳକୁ ଆମର ଚେତା ପଶୁଚି, ମୁଁ ଚାହୁଁଚି, ଆମ ପିଲାମାନେ ମୂଳରୁ ଏଇ କଥାଟିକୁ ଜାଣନ୍ତୁ । ଏଥିପାଇଁ ବାଟ ହେଉଛି ଗୋଟିଏ । ଆଉ ତା ହଉଚି ପାଠପଢ଼ା । ଆମେ ଆମ ପିଲାଙ୍କୁ ପାଠ ପଢେଇବା । ଏଇଥିରୁ ସେମାନେ ଦୁନିଆକୁ ଜାଣିବେ । ଆଉ ବୁଝିବାର ସୁଯୋଗ ବି ପାଇବେ । ନିଜ ଗୋଡ଼ରେ ଠିଆ ହେବା ପାଇଁ ପାଠ ହିଁ ବାଟ ବତାଇବ ।

ବୁଧୀ – କହି ଦଉଚ ଯେ ଭଉଣୀ, ଏ କାମ କ'ଣ ଏତେ ସହଜ ହେଇଚି ? ମୁଁ ଚାହୁଁଚି ମୋ ସୀତା ଆହୁରି ପଢୁ । ହେଲେ ମୋ ଶାଶୁ ଆଉ ଆମର ଇଏ ଦି'ଜଣ ଯାକ ଏକଥା ଚାହୁଁ ନାହାନ୍ତି । କହୁଚନ୍ତି, ଝିଅ ସହର ବଜାରକୁ ଯିବ ନାହିଁ ।

ସୁଧା – ଆଲୋ ବୁଧୀ, ଇଏ ତ ଖାଲି ତୋର କଥା ନୁହେଁ, ଆଜିର କେତେ ବି ଠିକ୍ ଏମିତି ଅସୁବିଧାରେ ପଡୁଚନ୍ତି । ତୁ ନିଜ ଝିଅକୁ ଉପରକୁ ପଢ଼ାଇବାକୁ ଚାହୁଁଚୁ । ଇଏ ବଡ଼ ଖୁସିର କଥା । ଘରଲୋକେ ମନା କରୁଛନ୍ତି । କଥାଟାକୁ ଭଲଭାବରେ ବିଚାର କରିବାକୁ ହେବ । ପଢ଼ାଟା

ଦରକାର । ଟିକିଏ ଯାହା ଦୋଷ ତ୍ରୁଟି ରହିଯାଉଛି,' ତାକୁ ଆମେ ମିଳିମିଶି ଦୂର କରିପାରିବା ।

ବୁଧୀ – କେମିତି ?

ସୁଧା – ଦେଖ, ଆମ ଗାଁ'କୁ ସଡ଼କ ନାହିଁ । ସଡ଼କ ପର୍ଯ୍ୟନ୍ତ ପହଞ୍ଚିଲେ ଯାଇଁ ସହରକୁ ମଟର ମିଳିବ । ସେଇଥି ପାଇଁ ଆମର ପହିଲି କାମ ହଉଚି—ଗାଁ'ରୁ ସଡ଼କ ପର୍ଯ୍ୟନ୍ତ ରାସ୍ତାକୁ ଠିକ୍ କରିବା । ରାସ୍ତା ହୋଇଗଲେ ଆମେ ଏଇ ଗାଁ'ରୁ ସିଧା ମଟର ଚଳାଇବା ପାଇଁ ଦାବି କରିପାରିବା ।

ଛଳ – ଆଉ ଗୋଟିଏ କଥା । ଆମେ ସବୁ ମିଶି ଗାଁର ରାସ୍ତାଟିକୁ ଆଗ ଠିକଣା କରନ୍ତେ ନାଇଁ ?

ସୁଧା – କାହିଁକି ପାରିବା ନାଇଁ ? ସବୁ ଠିକ୍ ଠିକଣା କରିଦେଲେ, ଆମେ ଚାହିଁଲେ ପରି ପାହାଡ଼ ଟାଳି



ଦେଇ ପାରିବା । ଇଏ କିବା କଥା ? ଭଲ କାମଟିଏ କଲେ ଗାଁ'ର ପଞ୍ଚାୟତ ଆମକୁ ସାହାଯ୍ୟ କରିବେ । ଗାଁ'ର ଆଉ ଲୋକେ କ'ଣ ହାତ ଲଗେଇବେ ନାହିଁ ? ରାଧା ମାଉସୀ, ତମେ ତ ପଞ୍ଚାୟତରେ ଅଛ, ତମେ କିଛି କର ।

ରାଧା – ମୁଁ ବସି ବସି ତୁମମାନଙ୍କ କଥା ଶୁଣୁଥିଲି ପରା ! ଯଦି ସବୁ ଭଉଣୀ ମିଶି ଭଲ କାମଟିଏ କରିବାକୁ ବାହାରିଚ, ତେବେ ପଞ୍ଚାୟତରୁ ସାହାଯ୍ୟ ନିଶ୍ଚେ ମିଳିବ । ମୁଁ କଥା ଦଉଚି । ପଞ୍ଚାୟତକୁ କହିବି । ସେମାନେ ଟ୍ରାକ୍‌ଟର, ଟ୍ରଲି ସବୁର ବେବସ୍ଥା କରି ଦେବେ । ସେଇଥିରେ ଆମେ ପାହାଡ଼ ପାଖରୁ ଗୋଡ଼ମାଟି ବୋହି ଆଣିବା । କଚ୍ଚା ରାସ୍ତାକୁ ପକ୍‌କା କରିଦେବା ।

ସୁଧା – ତେବେ ବୁଧୀ କଥା କ'ଣ କରିବା ? ଗାଁର ପିଲାଏ ପଞ୍ଚମ ଶ୍ରେଣୀରୁ ଆଗକୁ କେମିତି ପଢିବେ ? ଆସ, ସମସ୍ତେ ଏକାଠି ହୋଇ ଦାବି କରିବା । ଗାଁ ଚାଟଶାଳୀରେ ପଞ୍ଚମ ପରେ ଆଉ ଶ୍ରେଣୀ ଖୋଲା ଯାଉ । ଆମ ଝିଅମାନେ ସୁବିଧାରେ ଆଗକୁ ପଢିପାରିବେ ।

ବୁଧୀ, କମଳ – ହଁ, ହଁ, ଆମେ ସଭିଏଁ ତମ ପଛରେ ଅଛୁ । ଯୋଉଠିକି ଯିବାକୁ କହିବ, ସେଠିକୁ ଯିବୁ । ଧାରଣା ଦେବାକୁ ପଡ଼ିଲେ, ତା'ବି ଦେବୁ । ମୋଟେ ପଛକୁ ହଟିବୁ ନାହିଁ ।

ସୁଧା – ଯା'କୁ ଯେ କହନ୍ତି କଥା । ଏଇତ ନାରୀ ଜାଗରଣ । ସବୁ କଥାବାର୍ତ୍ତା ଠିକ୍ କରି ମୁଁ ତମମାନଙ୍କୁ ଜଣାଇବି । ଆମେ କାମ ଆରମ୍ଭ କରିବା । ଏଥର ତେବେ ଉଠିବା । ଜୟହିନ୍ଦ୍ ।

(ସ୍ୱର ଉଠାଇ) ଭାରତ ମାତା କି—(ସମସ୍ତେ) ଜୟ !

(ଦୃଶ୍ୟ ଶେଷ ହେଲା)